# ଶ୍ରୀ ବଲବନ୍ତ ସିଂ

## ସହିଦ ଭଗତ ସିଂ

ଭାଷାନ୍ତର

ଅଧ୍ୟାପକ ନୀଳମଣି ସାହୁ

ସେ ବଡ଼ ଈଶ୍ୱର ବିଶ୍ୱାସୀ ଥିଲେ । ଧର୍ମନିଷ୍ଠା କାରଣରୁ ତାଙ୍କୁ ଶିଖମାନଙ୍କର ପୁରୋହିତ କରି ଦିଆ ଯାଇଥିଲା । ଶାନ୍ତିର ପରମ ଉପାସକ ବଲବନ୍ତଙ୍କର ସ୍ୱଭାବ ବଡ଼ କୋମଳ ଥିଲା । ସେ ସୁମଧୁରଭାଷୀ ଥିଲେ । ଆରମ୍ଭରେ ପ୍ରଥମେ ସେ ନିଜେ ଈଶ୍ୱରୋପାସନା ପ୍ରତି ଧ୍ୟାନ ଦେଲେ । ଏହା ପରେ ସେ ଲୋକମାନଙ୍କୁ ମଧ୍ୟ ସେହି ଦିଗକୁ ଆଣିବା ପାଇଁ ଉଦ୍ୟମ ଆରମ୍ଭ କଲେ । ପରେ ଲୋକଙ୍କ କଷ୍ଟ ଦୂର କରିବା ପ୍ରୟାସ ଫଳରେ ଧୀରେ ଧୀରେ ସେ ଗୌରାଙ୍ଗ ମହାପ୍ରଭୁମାନଙ୍କୁ ସାମନା କରିବାକୁ ପଡ଼ିଥିଲା ଓ ଶେଷରେ ଫାଶୀ ପାଇଲା ବେଳେ ସେ ହସହସ ମୁହଁରେ ଜୀବନ ଦେଇଥିଲେ ।

ଶ୍ରୀ ବଲବନ୍ତ ସିଂଙ୍କ ଜନ୍ମ ଜଲନ୍ଧର ଜିଲ୍ଲାର ଖୁର୍ଦପୁର ଗ୍ରାମରେ ପହିଲି ଆଶ୍ୱିନ, ସମ୍ବତ୍ ୧୯୩୯ ବିକ୍ରମ ଶୁକ୍ରବାର ଦିନ ହୋଇଥିଲା । ତାଙ୍କର ପିତାଙ୍କ ନାମ ସରଦାର ବୁଦ୍ଧ ସିଂ ଥିଲା ।

ପରିବାରଟା ବଡ଼ ଧନାଢ୍ୟ ଥିଲା । ଧନ ଛଡ଼ା ସ୍ୱଭାବ ଓ ଅନ୍ୟାନ୍ୟ ଗୁଣ ଯୋଗୁଁ ତାଙ୍କ ପିତାଙ୍କୁ ସମସ୍ତେ ସମ୍ମାନ, ଆଦର ଦୃଷ୍ଟିରେ ଦେଖୁ ଥିଲେ । ଟିକିଏ ଚାଲାକ୍ ଚତୁର ହେଉ ହେଉ ବଳବନ୍ତଙ୍କୁ ଶିକ୍ଷା ପାଇଁ ଆଦମପୁରର ମିଡିଲ୍ ସ୍କୁଲରେ ଭର୍ତ୍ତି କରି ଦିଆଗଲା । ଛାତ୍ର ଜୀବନରେ ହିଁ ତାଙ୍କର ବିବାହ ହୋଇଗଲା । କିନ୍ତୁ ବିବାହର ପରେ ପରେ ହିଁ ଧର୍ମପତ୍ନୀଙ୍କର ମୃତ୍ୟୁ ହୋଇଗଲା । ମିଡିଲ୍ ପାସ ନ କରୁଣୁ ସ୍କୁଲ ଛାଡ଼ି ସେ ଫଉଜରେ ଭର୍ତ୍ତି ହୋଇଗଲେ। ଫଉଜରେ ଥିବାବେଳେ ସେ ସନ୍ଥ କର୍ମ ସିଂଙ୍କ ସାହଚର୍ଯ୍ୟ ଲାଭ କଲେ । ସନ୍ଥଙ୍କ ସଙ୍ଗତ ଯୋଗୁଁ ଈଶ୍ୱର-ଭଜନ ଆଡ଼କୁ ତାଙ୍କର ମନ ଢଳିଗଲା । ଯେନ ତେନ ପ୍ରକାରେଣ ଦଶ ବର୍ଷ ଚାକିରୀ କଲେ, କିନ୍ତୁ ହଠାତ୍ ଚାକିରୀ ଛାଡ଼ି ଦେଇ ନିଜ ଗ୍ରାମରେ ରହି ଈଶ୍ୱରୋପାସନା ଆରମ୍ଭ କରିଦେଲେ । ଫଉଜରେ ଚାକିରୀ କାଳରେ ହିଁ ତାଙ୍କର ଦ୍ୱିତୀୟ ବିବାହ ହୋଇ ସାରିଥିଲା । ଗାଁ ନିକଟରେ ଏକ ଗୁମ୍ଫା ଥିଲା । ତାରି ଭିତରେ ନିଜକୁ ବନ୍ଦ ରଖି ଭଗବତ୍ ଭଜନରେ ମଜ୍ଜି ରହିବାରେ ଲାଗିଲେ । ଏଗାର ମାସ ତାରି ଭିତରେ ରହିବା ପରେ ବାହାରକୁ ଆସୁ ଆସୁ ୧୯୦୫ରେ କ୍ୟାନାଡ଼ା ଯିବା ପାଇଁ ନିଶ୍ଚୟ କରି ସେଠାକୁ ହିଁ ଚାଲିଗଲେ ।

କ୍ୟାନାଡ଼ାରେ ସେ ତାଙ୍କର ଅନ୍ୟ ଜଣେ ସାଥୀ ଶ୍ରୀ ଭାଗ ସିଂଙ୍କ (ଯାହାଙ୍କୁ ପରେ ଜଣେ ଦେଶଦ୍ରୋହୀ ଗୁଳି କରି ଦେଇଥିଲା) ସହ ମିଳି ଗୁରୁଦ୍ୱାରା ତୋଳିବା କାର୍ଯ୍ୟ ଆରମ୍ଭ କରି ଦେଇଥିଲେ । ଭେଙ୍କୋଭରରେ ହିଁ ତାଙ୍କ ପ୍ରଯତ୍ନରେ ଆମେରିକାର ସର୍ବ ପ୍ରଥମ ଗୁରୁଦ୍ୱାରା ପ୍ରତିଷ୍ଠା ହୋଇଥିଲା । ସେହି ସମୟରେ ସେଠାକୁ ଯାଇଥିବା ଭାରତୀୟଙ୍କ ମଧ୍ୟରେ କୌଣସି ସଂଗଠନ ନଥିଲା । ସେମାନଙ୍କୁ

ଗୋରା ଲୋକମାନେ ହଇରାଣ ହର୍‌କତ୍ କରୁଥିଲେ । କିନ୍ତୁ ଆମର ଏହି ନାୟକ ସେଠାରେ ପହଞ୍ଚିବା ପରେ ତ୍ରୁଟିଗୁଡ଼ିକୁ ସଜାଡ଼ିବା ପାଇଁ ଯଥାସାଧ୍ୟ ପ୍ରୟାସ କଲେ ।

ସେହି ସମୟରେ ସେଠିକାର ପ୍ରବାସୀ ହିନ୍ଦୁ ଓ ଶିଖ ଲୋକମାନେ ଶବ ସଂସ୍କାର ବେଳେ ଭୀଷଣ ଅସୁବିଧାର ସମ୍ମୁଖୀନ ହେଉଥିଲେ । ଶବ ପୋଡ଼ିବା ପାଇଁ ସେମାନଙ୍କୁ ଅନୁମତି ନଥିଲା । ଏପରି ଅବସ୍ଥାରେ ବେଚାରା ସେହି ଲୋକମାନଙ୍କୁ ଅନେକ ଅନେକ କଷ୍ଟ ସହିବାକୁ ପଡୁଥିଲା । କେତେ ଥର ସେମାନଙ୍କୁ ବର୍ଷାରେ, ବରଫରେ ଶବକୁ ଜଙ୍ଗଲକୁ ନେଇ ଯାଇ କିଛି କାଠ ଏକାଠି କରି ତେଲ ଢ଼ାଳି ନିଆଁ ଜଳେଇ ଭାଗିବାକୁ ପଡୁଥିଲା। ଏପରି ଅବସ୍ଥାରେ ବି କ୍ୟାନାଡ଼ୀୟ ଲୋକମାନଙ୍କର ଗୁଳିର ଶୀକାର ହେବାର ଡର ରହୁଥିଲା । ଶ୍ରୀ ବଳବନ୍ତ ସିଂ ଏହି ଅସୁବିଧା ଦୂର କରିବା ବ୍ୟବସ୍ଥା କଲେ । କିଛି ଜମି କିଣି ନେଲେ । ଦାହ-ସଂସ୍କାର ପାଇଁ ଅନୁମତି ମଧ୍ୟ ପାଇଗଲେ । ଗୁରୁଦ୍ୱାରାରେ ଭାରତୀୟ ମଜୁରିଆମାନଙ୍କର ସଂଗଠନ ମଧ୍ୟ କରିବାରେ ଲାଗିଲେ । ସେମାନଙ୍କ ମଧ୍ୟରେ ସଚ୍ଚରିତ୍ରତା ଓ ଇଶ୍ୱରୋପାସନାର ପ୍ରଚାର ସେ କରୁଥିଲେ । ଗୁରୁଦ୍ୱାରାଟି ଅତି ଯତ୍ନର ସହ ତିଆରି ହୋଇ ପାରିଥିଲା । ତହିଁରେ ତାଙ୍କରି ପରିଶ୍ରମ ହିଁ ସର୍ବାଧିକ ଥିଲା । ତେଣୁ ସମସ୍ତେ ମିଶି ତାଙ୍କୁ ହିଁ ଗ୍ରନ୍ଥୀ କରିବା ପାଇଁ ନିଷ୍ପତ୍ତି କଲେ । ପ୍ରଥମେ ପ୍ରଥମେ ତ ସେ ସେହି କଥାକୁ ଗ୍ରହଣ କରୁ ନଥିଲେ, କିନ୍ତୁ ପରେ ହଁ ଭରିଲେ ।

ଶିଖ ଲୋକମାନେ ବଡ଼ ହୃଷ୍ଟ ପୃଷ୍ଟ ଓ ପରିଶ୍ରମୀ ଥିଲେ । ସେମାନେ କ୍ୟାନାଡ଼ା ଯିବା ଫଳରେ ଗୋରା ମଜୁରିଆମାନଙ୍କର ଆଦର କମି ଗଲା । ଅପର ପକ୍ଷରେ ଇଂରେଜ ମଜୁରିଆଙ୍କ ଠାରୁ ସେମାନଙ୍କର ବେତନ ମଧ୍ୟ ବହୁତ କମ୍ ଥିଲା। ସେମାନଙ୍କର ପ୍ରଥମ ଦଳ ପହଞ୍ଚୁ ପହଞ୍ଚୁ ଗୋରା ମଜୁରିଆମାନେ ଦଙ୍ଗା ହାଙ୍ଗାମା

ଆରମ୍ଭ କରିଦେଲେ । କିନ୍ତୁ ଯୋଦ୍ଧା ବୀର ଶିଖମାନେ ଏହି କଥାରେ ଡରିବା ଲୋକ ନଥିଲେ । ଏହା ଦ୍ୱାରା ଗୋରାମାନେ ଆହୁରି ଅଧିକା ଚିଡ଼ି ଗଲେ । ତଥାପି ଗୁରୁଦ୍ୱାରାଟି ତିଆରି ହୋଇ ଯିବା ଫଳରେ ଶିଖମାନଙ୍କର ସଂଗଠନ ବଢ଼ିବାରେ ଲାଗିଲା । ନୂତନ ଆଗନ୍ତୁକମାନଙ୍କୁ ସକଳ ପ୍ରକାର ସୁବିଧା ଉପଲବ୍ଧ ହେବାରେ ଲାଗିଲା । ଏହାସବୁ ଦେଖି ସେଠିକାର ଗୋରା ସରକାର ଏମାନଙ୍କୁ ବାହାର କରିବା ପାଇଁ ଯତ୍‌କିଞ୍ଚିତ୍ ଉପାୟ ଖୋଜି ବାହାର କରିବାରେ ଜୁଟି ଗଲେ । ଇମିଗ୍ରେସନ ବିଭାଗର ଲୋକମାନେ ଭାରତୀୟ ମଜୁରିଆମାନଙ୍କୁ ବହୁତ ଫୁସୁଲାଫୁସୁଲି କରି ହୁଣ୍ଡୁରାସ୍ ନାମକ ଦ୍ୱୀପକୁ ଚାଲିଯିବା ପାଇଁ ରାଜି କରେଇବା ପାଇଁ ପ୍ରଯତ୍ନ କଲେ । ସେହି ଦ୍ୱୀପର ବହୁତ ପ୍ରଶଂସା କରାଗଲା । କିନ୍ତୁ ଭାଇ ବଳବନ୍ତ ସିଂ ଜୀ ଭଲକରି ବୁଝିଥିଲେ ଯେ ଏହି ସବୁ କଥା କେବଳ ଧୋକାବାଜୀ ଛଡ଼ା ଅନ୍ୟ କିଛି ନୁହେଁ । ସେ ଆପଣାର ଜଣେ ବିଶ୍ୱସ୍ତ ଲୋକଙ୍କୁ ସେହି ସ୍ଥାନ ଦେଖି ଆସିବା ପାଇଁ ପଠେଇଲେ । ସେହି ଭଦ୍ରବ୍ୟକ୍ତିଙ୍କର ନାମ ଥିଲା ଶ୍ରୀ ନାଗର ସିଂ । ତାଙ୍କୁ ସେଠି ଇମିଗ୍ରେସନ ବିଭାଗର ଲୋକମାନେ ଭାରତର ପାଞ୍ଚ ଚକଡ଼ା ଜମି ଓ ପାଞ୍ଚ ହଜାର ଡଲାର ଦେବାର ଲୋଭ ଦେଖାଇ ଏହି କଥାରେ ତାଙ୍କୁ ରାଜି କରେଇବା ପାଇଁ ଚାହିଁଲେ ଯେ ସେ ଭାରତୀୟମାନଙ୍କୁ ହୁଣ୍ଡୁରାସ୍ ଦ୍ୱୀପକୁ ଚାଲିଯିବା ପାଇଁ ରାଜି କରେଇବେ । ଫେରି ଆସିବା କ୍ଷଣି ସେ ସବୁ କଥା ପଦାରେ ପକେଇ ଦେଲେ । ଇମିଗ୍ରେସନ ବିଭାଗର ଲୋକମାନେ ମଧ୍ୟ ଖୋଲାଖୋଲି ଭାବେ ସେମାନଙ୍କର ଖେଳ ଖେଳିଲେ । ଏବେ ଖୋଲାଖୋଲି ଯୁଦ୍ଧ ଆରମ୍ଭ ହୋଇଗଲା । ଇମିଗ୍ରେସନ ବିଭାଗର ଲୋକମାନେ ଉଚିତ ଅନୁଚିତର ବିଚାର ଛାଡ଼ି ଦେଲେ । ଯେମିତି ଯେମିତି ମାମଲା ବଢ଼ିଲା ସେମିତି ସେମିତି ଶ୍ରୀ ବଳବନ୍ତ ସିଂ ଜୀ ମଧ୍ୟ ଆଗକୁ ଆଗକୁ ବଢ଼ି ଚାଲିଲେ ।

ପ୍ରବାସୀ ଭାରତୀୟମାନଙ୍କର ଇଚ୍ଛା ଥିଲା ଯେ ସେମାନେ ଭାରତକୁ ଫେରି ନିଜ ନିଜର ପରିବାରକୁ ସଙ୍ଗରେ ନେଇ ପୁଣି ଫେରି ଯିବେ । ବହୁତ ଦିନ ପର୍ଯ୍ୟନ୍ତ ଟଣାଓଟରା ଚାଲିଲା । ଶେଷରେ ଗୋଟିଏ ପରାମର୍ଶ ଚିନ୍ତା କରାଗଲା । ନିଜନିଜର ପରିବାରକୁ ଆଣିବା ଲାଗି ଶ୍ରୀ ବଳବନ୍ତ ସିଂ, ଶ୍ରୀ ଭାଗ ସିଂ ଓ ଶ୍ରୀ ସୁନ୍ଦର ସିଂ ଜୀଙ୍କୁ ଭାରତ ପଠେଇବା ପାଇଁ ପ୍ରସ୍ତାବ ଗୃହିତ ହେଲା । ସେହି ତିନି ଜଣ ଭଦ୍ରଲୋକ ଭାରତ ଫେରି ଆସିଲେ ।

୧୯୧୧ ରେ ସେମାନେ ପୁଣି ସପରିବାର ଯାତ୍ରା କଲେ । ହଂଙ୍ଗ୍‌କଙ୍ଗ୍ ପହଞ୍ଚିବା ପରେ ଟିକଟ ନ ମିଳିବା ଯୋଗୁଁ ଅଟକିବାକୁ ପଡ଼ିଲା । ସେଠାରେ ପଡ଼ି ରହି ସେ ଭେଙ୍କୋଭର ଗୁରୁଦ୍ୱାରାବାଲାଙ୍କ ସହ ପତ୍ର ସାହାଯ୍ୟରେ ଉପଦେଶ ଦେବାରେ ଲାଗିଲେ । ଶେଷରେ ତିନି ଜଣଯାକ ଯାତ୍ରା କଲେ । ଶ୍ରୀ ସୁନ୍ଦର ସିଂ ଜୀ ତ ଭେଙ୍କୋଭର ଗଲେ, କିନ୍ତୁ ଅନ୍ୟ ଦୁଇ ଜଣ ତିନୋଟିଯାକ ପରିବାର ସହ ସାନ୍‌ଫ୍ରାନ୍‌ସିସ୍କୋ ଯାତ୍ରା କଲେ । ଭାଇ ସୁନ୍ଦର ସିଂ ତ ଭେଙ୍କୋଭରରେ ପହଞ୍ଚି ଗଲେ, କିନ୍ତୁ ଯୁକ୍ତରାଷ୍ଟ୍ର ଆମେରିକା ତ ଯାହା ହେଲେ ବି ଗୋରାମାନଙ୍କର ରାଜ୍ୟ ଥିଲା ଓ ସେଠାରେ ଏମାନେ ବି ତ ଗୋଲାମ ଭାରତବାସୀ ଥିଲେ, ତେଣୁ ପରିବାର ସହିତ ସେଠାରେ ଓହ୍ଲାଇବା ପାଇଁ ଅନୁମତି ମିଳିଲା ନାହିଁ । ସେମାନେ ପୁଣି ହଂଙ୍ଗ୍‌କଙ୍ଗ୍ ଫେରି ଆସିଲେ । ବହୁତ ଦିନ ପରେ ପୁଣି ବଡ଼ ଯତ୍ନରେ ପରିବାରଗୁଡ଼ିକ ପାଇଁ ଭେଙ୍କୋଭରକୁ ଟିକଟ ନେଲେ । ଭେଙ୍କୋଭରରେ ସେ ଦୁଇ ଜଣଙ୍କୁ ତ ଓହ୍ଲେଇବା ପାଇଁ ତ ଅନୁମତି ମିଳିଲା, କିନ୍ତୁ ପରିବାରଗୁଡ଼ିକୁ ଓହ୍ଲେଇବା ପାଇଁ ଅନୁମତି ମିଳିଲା ନାହିଁ । ଝଞ୍ଜଟ ବଡ଼ ଆକାର ନେଲା। ପରିଶେଷରେ ପରିବାରଗୁଡ଼ିକୁ ସେତେ ଦିନ ସକାଶେ ଓହ୍ଲେଇବା ପାଇଁ ଅନୁମତି ମିଳିଲା, ଯେତେ ଦିନ ମଧ୍ୟରେ ଇମିଗ୍ରେସନ

ବିଭାଗର ଓଟାଓ୍ୱା କେନ୍ଦ୍ରରୁ ଅନ୍ତିମ ଅନୁମତି ଆଶା କରା ଯାଇପାରେ । ପରିବାରଗୁଡ଼ିକ ଓହ୍ଲେଇଲେ ସତ, ହେଲେ ଜମାନତରେ । ଜମାନତର କାଳ ପୁରି ଯିବାର ଦୁଇ ଦିନ ପରେ ପରିବାରଗୁଡ଼ିକୁ ନେବା ପାଇଁ ଇମିଗ୍ରେସନ ବିଭାଗର ଲୋକ ଆସିଲେ । କିନ୍ତୁ ଶିଖ ଲୋକମାନେ ଝଗଡ଼ା କରିବା ପାଇଁ ପ୍ରସ୍ତୁତ ହୋଇଗଲେ । ଅଫିସରମାନେ ଟିକିଏ ଗରମ ହେଲେ, କିନ୍ତୁ ବୀର ଯୋଦ୍ଧାମାନଙ୍କର ନାଲି ଆଖି ଦେଖି ମୁହଁ ଆମ୍ଫିଳେଇ ଫେରି ଗଲେ । ନାଲି ଆଖିର ପଛରେ କି ବଳ ଥିଲା, କି ଦୃଢ଼ତା ତଥା ସଂକଳ୍ପ ଥିଲା ଯାହା ଦ୍ୱାରା କ୍ୟାନାଡ଼ାର ରାଜଶକ୍ତି ଓ ତାହାର ଇମିଗ୍ରେସନ ବିଭାଗ କର୍ମି ଥର ହର ହେଲା ଓ ସେହି ପରିବାରଗୁଡ଼ିକୁ ସେଠାରେ ରହିବା ପାଇଁ ଦିଆଗଲା । ଏହି ବିଷୟଗୁଡ଼ିକ ସେତେବେଳେ ଗୋଲାମ ଭାରତବାସୀ ବୁଝିପାରୁ ନଥିଲେ । ସେମାନଙ୍କର କୂପମଣ୍ଡୁକତା, ସଂକୀର୍ଣ୍ଣ ଦୃଷ୍ଟିକୋଣ ବୁଝିପାରୁ ନଥିଲା ଯେ ରାଷ୍ଟ୍ରକୁ ତିଆରି କରିବା ବେଳେ କିପରି ସମୟ, କିପରି ଘଡ଼ି ଆସି ପହଞ୍ଚି ଥାଏ । ସ୍ୱାଧୀନ ଭାରତ ନିଜର ସ୍ୱାଧୀନତା ସଂଗ୍ରାମର ଏହି ଅଦ୍ୱିତୀୟ ଘଟଣାଗୁଡ଼ିକୁ ମନେ ପକେଇବ । ତାହାର ଇତିହାସ ଲେଖକମାନେ ହିଁ ଏହି ସବୁ କଥାଗୁଡ଼ିକୁ ଖୁବ୍ ସୁନ୍ଦର ଭାବରେ ଲେଖିବା ସକାଶେ ସୁଅବସର ପାଇ ପାରିବେ । ଦଫା ୧୨୪ଅ ଆଦି ବିକରାଳ ଦାନବ ସେମାନଙ୍କର ଗଳା ଦବେଇ, ଆଖି ତାଡ଼ି ଅଥଚ ନିଶ୍ୱାସପ୍ରଶ୍ୱାସ ବନ୍ଦ ନକରି ରଖିଥିବେ । ସେହି ପରିବାରଗୁଡ଼ିକ ତ ସେଠି ରହିଗଲେ, କିନ୍ତୁ ଅନ୍ୟ ଭାରତୀୟମାନଙ୍କ ପରିବାର ଆଣିବା ସମସ୍ୟା ଯେମିତି ଥିଲା ସେମିତି ଏକ ଜ୍ୱଳନ୍ତ ସମସ୍ୟା ହୋଇ ରହିଗଲା । ଦୁଇ ବର୍ଷ ପର୍ଯ୍ୟନ୍ତ ନିରନ୍ତର ଝଗଡ଼ା ଚାଲିଲା, ହେଲେ ସେଥିରୁ ପରିଣାମ କିଛି ବାହାରିଲାନି । ଶେଷରେ ଏହା ନିଷ୍ପତ୍ତି ହେଲା ଯେ ଇଂଲଣ୍ଡର ସରକାର ଓ ଜନତା ତଥା ଭାରତର ସରକାର ଓ ଜନତା

ସମ୍ମୁଖରେ ନିଜର ଦାବୀ ଉପସ୍ଥାପନ କରାଯାଉ ଏବଂ ସେମାନଙ୍କର ସହଯୋଗରେ ଏହି ସମସ୍ୟାର ସମାଧାନ କରାଯାଉ ।

ଏକ ଡେପୁଟେସନ ଗଠନ କରାଗଲା ଯାହା ଇଂଲଣ୍ଡ ଓ ଭାରତ ଉଭୟ ଦେଶକୁ ଗଲା । ତାହାର ତିନି ଜଣ ସଦସ୍ୟଙ୍କ ମଧ୍ୟରେ ଜଣେ ହେଇ ଆମର ନାୟକ ଶ୍ରୀ ବଳବନ୍ତ ସିଂ ମଧ୍ୟ ଥିଲେ । ଇଂଲଣ୍ଡ ଗଲେ । ସମସ୍ତ ଉଚ୍ଚ ଅଧିକାରୀମାନଙ୍କ ସହ ଦେଖା କଲେ । କୁହାଗଲା — "ମାମଲାଟି ଭାରତ ସରକାରଙ୍କ ଜରିଆରେ ଏଠି ପହଞ୍ଚିବା ଆବଶ୍ୟକ ।" ନିରାଶ ହୋଇ ଭାରତକୁ ଆସିଲେ । ଆନ୍ଦୋଳନ ଆରମ୍ଭ କଲେ । ସେହି ସମୟର ପ୍ରମୁଖ ନେତା ଲାଲା ଲାଜପତରାୟ ମଧ୍ୟ ସେମାନଙ୍କୁ ପୋଚରା ଉତ୍ତର ଦେଇ ପଛ ଧରିବାରୁ କ୍ଷାନ୍ତ କରେଇ ଥିଲେ । ଫେର୍ କଅଣ ହେଲା? କେତେକ ଭଦ୍ରବ୍ୟକ୍ତିଙ୍କ ସହାୟତା ମିଳିଲା । ଜନସଭାମାନ କରାଗଲା । କ୍ରୋଧ ଥିଲା, ରାଷ୍ଟ୍ରୀୟ ଅସହାୟତା ଥିଲା, ଆଉ ତା ସାଙ୍ଗକୁ ଥିଲା ଘୋର ନିରାଶା । ପୋଡୁଥିବା ହୃଦୟରୁ ଯାହା ବାହାରିଲା, ତାହା କହିଲେ । ଆଉ ତା ପରେ? ସାର୍ ମାଇକେଲ୍ ଓଡାୟର ନିଜର *India As I Know It* ନାମକ ପୁସ୍ତକରେ ଲେଖିଛନ୍ତି — "At this stage sent a warning to the delegates that if this continued, I would be compelled to take serious action...The delegates on this asked for an interview with me. I had a long talk with them and repeated my warning. Two of them were...and spacious; the manner of third seemed to be that of a dangerous revolutionary. They wished to see The Viceroy, and in sending them on to him, I particularly warned him about this man."

ଏହି ତୃତୀୟ ଭଦ୍ରଲୋକ, ଯାହା ଉପରେ ଆମର ଲାଟ ଏତେ କଥା କହିଗଲେ, ହେଉଛନ୍ତି ଆମର ସେହି ନାୟକ ବଳବନ୍ତ ସିଂ । ସେହି ଭାବୁକ ହୃଦୟ ତ ଗଭୀର ଚୋଟ ଖାଇ ସାରିଥିଲା । ଆତ୍ମସମ୍ମାନର ଭାବନାକୁ ତ ବାରମ୍ବାର କୁଠାରାଘାତ କରାଯାଇ ସାରିଥିଲା । ସେ ଧୀରେ ଧୀରେ ନିଶ୍ଚୟ କରି ନେଇଥିଲେ ଯେ ଭାରତକୁ ହର୍ ସମ୍ଭବ ଉପାୟରେ ସ୍ୱାଧୀନ କରିବାଟା ହିଁ ପ୍ରତ୍ୟେକ ଭାରତବାସୀଙ୍କ ସର୍ବପ୍ରଥମ କର୍ତ୍ତବ୍ୟ ଅଟେ ।

ଡେପୁଟେସନ ହତାଶା-ନିରାଶା ଭିତରେ ୧୯୧୪ ର ଆରମ୍ଭରେ ଫେରିଗଲେ । ଏହି ସମୟରେ ଭାରତୀୟ ବିଦ୍ରୋହୀ ଶ୍ରୀ ଭଗବାନ ସିଂ ଓ ଶ୍ରୀ ବରକତୁଲ୍ଲା ମଧ୍ୟ ଆମେରିକାରେ ପହଞ୍ଚିଗଲେ । ଯୁକ୍ତରାଷ୍ଟ୍ର ଆମେରିକାରେ ଏହି ସମୟରେ ହିନ୍ଦୁସ୍ଥାନ-ଏସୋସାଏସନ (Hindustan Association) ର କାମ ଜୋର୍‌ସୋର୍‌ରେ ଚାଲିଲା । ଗଦର ଦଳ, ଗଦର ପ୍ରେସ ଓ ଗଦର ଖବରକାଗଜର ପ୍ରଚଳନ ହେଇଗଲା । କିନ୍ତୁ ଉପରୋକ୍ତ ଡେପୁଟେସନରେ ଥିବା ସୁଜନମାନଙ୍କର ଏପର୍ଯ୍ୟନ୍ତ ସେମାନଙ୍କ ସହ କୌଣସି ପ୍ରକାର ସମ୍ପର୍କ ସ୍ଥାପନ ହୋଇ ନଥିଲା । କିନ୍ତୁ ସାର୍ ମାଇକେଲ୍ ଓଡାୟର ସେମାନଙ୍କୁ ଗଦର ଦଳର ହିଁ ପ୍ରତିନିଧି ରୂପେ ଉଲ୍ଲେଖ କରିଛନ୍ତି। ଭଲ କଥା ।

ସେହି ସମୟ ପର୍ଯ୍ୟନ୍ତ ଭାରତବର୍ଷର ଆପତ୍ତି ଅଭିଯୋଗ ଅନ୍ୟ ଜାତିମାନଙ୍କ ସମ୍ମୁଖରେ ରଖାଯାଇ ନଥିଲା। କିନ୍ତୁ ଏହି ଡେପୁଟେସନ ଜାପାନ ଓ ଚୀନର ରାଜନୀତିଜ୍ଞମାନଙ୍କୁ ସାକ୍ଷାତ କରି ହିଁ ଯାଇଥିଲେ ଏବଂ ଭାରତ ପ୍ରତି ସେମାନଙ୍କର ସହାନୁଭୂତି ଆକୃଷ୍ଟ କରିବା ପାଇଁ ଏମାନେ ଯଥାସାଧ୍ୟ ଚେଷ୍ଟା କରିଥିଲେ । ଭେଙ୍କୋଭର ଫେରି ନିଜର ନିଷ୍ଫଳ ପ୍ରଯତ୍ନର ଇତିହାସ ଶୁଣେଇ ଶ୍ରୀ ବଳବନ୍ତ ସିଂ ଜୀ

ଏକ ବଡ଼ ପ୍ରଭାବଶାଳୀ ବକ୍ତୃତା ଦେଇଥିଲେ । ଏଭଳି ବକ୍ତୃତା ରାଷ୍ଟ୍ରର ଇତିହାସରେ ବିଶେଷ ସମ୍ମାନ ପାଇଥାଏ । ଗଭୀର ଚିନ୍ତା ପରେ ଚାରି ଦିଗରୁ ତାଙ୍କୁ କେବଳ ଏହି ଗୋଟିଏ କଥା ଶୁଣିବାକୁ ମିଳିଥିଲା, ତାଙ୍କର ଅନ୍ତଃସ୍ଥଳରୁ କେବଳ ଏହି ଏକ ଧ୍ୱନୀ ଉଠିଥିଲା ଯେ "ସକଳ ରୋଗର ଏକ ମାତ୍ର ଔଷଧ ହେଉଛି ଭାରତର ସ୍ୱାଧୀନତା ।" ସେ ଭାଷଣରେ ନିଜର ଅନୁଭବ ତଥା ଗଭୀର ଚିନ୍ତାରୁ ଯେଉଁ ଶେଷ ସିଦ୍ଧାନ୍ତ ବାହାରି ଥିଲା ତାକୁ ହିଁ କହି ଶୁଣେଇ ଥିଲେ ।

ତାଙ୍କର ନିର୍ମଳତା, ଶାନ୍ତି, ବୀରତା, ଗମ୍ଭୀରତା ତଥା ନିର୍ଭୀକତାକୁ ଦେଖି ଅନ୍ୟମାନେ କହୁଥିଲେ ଯେ "ବଳବନ୍ତ ସିଂ ଶିଖମାନଙ୍କର ପାଦ୍ରି ନା ସେନାପତି (General), ତାହା ନିର୍ଣ୍ଣୟ କରିବା ଅତି କଷ୍ଟକର କଥା ।" ହଉ, ଭଲ କଥା ।

ନିକଟ ଭବିଷ୍ୟତରେ କଅଣ କରାଯିବ ତାହା ସ୍ଥିର କରିବା ପାଇଁ ସମୟ ମିଳିବା ପୂର୍ବରୁ ଆଉ ଏକ ନୂଆ ସମସ୍ୟା ଆସି ଠିଆ ହେଲା — କାମାଗାଟାମାରୁ ଜାହାଜ ଆସି ପହଞ୍ଚି ଗଲା । କୂଳରେ ଲାଗିବା ପାଇଁ ତ ଅନୁମତି ମିଳିଲା ନାହିଁ, ଓଲଟି ତା ଉପରେ ନାନା ଅତ୍ୟାଚାର ଅଜାଡ଼ି ଦିଆଗଲା । ଯେତେ ଦିନ ଜାହାଜ ସେଠି ରହିଲା, ସେତେ ଦିନ ପର୍ଯ୍ୟନ୍ତ ସବୁ ଭାରତୀୟ ଏକାଗ୍ରଚିତ୍ତରେ ତାକୁ ସାହାଯ୍ୟ କରିବା ପାଇଁ ଜୁଟି ରହିଲେ । ଏ କ୍ଷେତ୍ରରେ ମଧ୍ୟ ନେତୃତ୍ୱ ଆମର ନାୟକଙ୍କ ହାତରେ ଥିଲା । ସେ ଦିନରାତି ଏକ କରିଦେଲେ । ଏତିକି ପରିଶ୍ରମ ଆଉ କେହି ପଡ଼ି ପାରନ୍ତା କି ନାହିଁ ଆଜି କହି ହେବନି । ଭଡ଼ାର କିସ୍ତି ପୈଠ କରିବାରେ ଡେରି ହେଉଥିବା ଆଳରେ ଗୋରାଶାହି ଯେଉଁ ବାଧାମାନ ସୃଷ୍ଟି କରିବାକୁ ଚାହୁଁ ଥିଲା, ତାର ଭାର ବି ତାଙ୍କରି ଉପରେ ପଡ଼ିଲା । ୧୧ ହଜାର ଡଲାରର ଆବଶ୍ୟକତା ଥିଲା । ୧୧ ହଜାର ଡଲାର ପାଇଁ ସଭାରେ ସେ ଯେଉଁ ଅପିଲ କରିଥିଲେ ସେଥିରେ ଏତେ ଦରଦ ଥିଲା,

ତାର ପ୍ରଭାବ ଏତେ ଥିଲା ଯେ ବର୍ଣ୍ଣନା କରି ହେବନି । ୧୧ ହଜାର ଡଲାର ଏକାଠି ହୋଇଗଲା । ସେମାନଙ୍କର ଆର୍ଥିକ ଆବଶ୍ୟକତାକୁ ପୂରଣ କରିବା ପରେ ସେ ଉପଦେଶ-ପରାମର୍ଶ ପାଇଁ ଦକ୍ଷିଣ ଆଡ଼କୁ ବହୁ ଦୂର ଚାଲିଗଲେ । ଅକସ୍ମାତ୍ ସେ ଆମେରିକାର ସୀମାରେ ପହଞ୍ଚି ଗଲେ । ଗୋରା ସରକାର ଧରି ନେଲେ । କହିଲେ, "ଆମେରିକାରୁ ଆସିଛ, ଆଉ ଚୋରାରେ କ୍ୟାନାଡ଼ାରେ ପ୍ରବେଶ କରୁଛ ।" ଏହି ଭିତ୍ତିହୀନ ଦୋଷ ମଧ୍ୟ ଏକ ଲମ୍ବା ଝଗଡ଼ାର କାରଣ ହେଲା । କେତେକ ଝଗଡ଼ା ପରେ ମାମଲାର ଅନ୍ତ ହେଲା ଓ ସେ ଭେଙ୍କୋଭର ଫେରିଲେ । କେତେକ ଦିନ ପରେ ନିରାଶ ହୋଇ କାମାଗାଟାମାରୁ ଜାହାଜ ମଧ୍ୟ ଅଗତ୍ୟା ଫେରିଲା ।

କାମାଗାଟାମାରୁ ସହ ଭାରତର ଯେଉଁସବୁ ଆଶା ଯୋଡ଼ି ହୋଇ ଥିଲା, ସେସବୁକୁ ହଠାତ୍ ଧୂଳିସାତ୍ କରି ଦିଆଗଲା । ଭାରତର ବ୍ୟବସାୟ ଦିଗରେ ଏହା ତ ପ୍ରଥମ ପ୍ରୟାସ ଥିଲା । ସେଥିରେ ଭାରତ-ହିତକାରୀ ଶାସକମାନେ ସମ୍ପୂର୍ଣ୍ଣ ରୂପରେ ପେଶିବା ପାଇଁ ଏପରି ଚେଷ୍ଟା କଲେ ଯେ ଭବିଷ୍ୟତରେ ଯେମିତି ସେପରି ଦୁଃସାହସ ଆଉ କେହି କରିବେନି । କ୍ୟାନାଡ଼ାରେ ଯେତେଦିନ ଜାହାଜ ରହିଥିଲା, ସେତେଦିନ ତାହା ସହ ଯେଉଁ ଅମାନୁଷିକ ବ୍ୟବହାର ହୋଇଥିଲା, ତାହାର ରୋମାଞ୍ଚକର ବର୍ଣ୍ଣନା କରିବା ସ୍ଥାନ ଏହା ନୁହେଁ । ହେଲେ ତାହାର ସ୍ମୃତି ହୃଦୟରେ ନିଆଁ ଲଗେଇ ଦେଉଛି, ପାଗଳ କରି ଦେଉଛି, କାନ୍ଦଉଛି । ସେହି ସବୁର ଉତ୍ତରଦାୟିତ୍ୱ ଭେଙ୍କୋଭରରେ ଥିବା ଇମିଗ୍ରେସନ ବିଭାଗର ମୂଖ୍ୟ ଅଧ୍ୟକ୍ଷ ମି: ହପ୍‌କିନସ୍‌ଙ୍କ ଉପରେ ହିଁ ଥିଲା । ଏମାନେ ତାଙ୍କ ଉପରେ ବହୁତ ନାରାଜ ଥିଲେ, ଆଉ ଟିକିଏ ଶୁଣନ୍ତୁ । ଶ୍ରୀବଳବନ୍ତ ସିଂ, ଶ୍ରୀ ଭାଗା ସିଂ ଏହି ଦୁଇ ଭଦ୍ରଲୋକ ହିଁ ତ ଆରମ୍ଭରୁ ଇମିଗ୍ରେସନ ବିଭାଗ ଲୋକଙ୍କ ସହ ବୀରତାପୂର୍ବକ ଲଢ଼େଇ କରି ଆସୁଥିଲେ ।

କାମାଗାଟାମାରୁ ଜାହାଜରେ ମଧ୍ୟ ସମସ୍ତ କାର୍ଯ୍ୟ ଏହି ଦୁଇ ଜଣ ହିଁ ତ କରିଥିଲେ । ସେମାନେ ଇମିଗ୍ରେସନ ବିଭାଗର ଆଖିରେ କଣ୍ଟା ହେଇ ରହିଥିଲେ । ଏକ ଭଡ଼ାଟିଆ ଦେଶଦ୍ରୋହୀ ମିଳିଗଲା । ଗୁରୁଦ୍ୱାରାରେ ଧର୍ମସଭା ଚାଲିଥିଲା । ସେହି ବିଭୀଷଣ ଈଶ୍ୱର ଭଜନରେ ମଜ୍ଜି ରହିଥିବା ଶ୍ରୀ ଭାଗା ସିଂ ଓ ବଳବନ୍ତ ସିଂଙ୍କ ଉପରକୁ ପିସ୍ତଲରୁ ଫାୟାର କଲା । ଶ୍ରୀ ଭାଗା ସିଂ ଜୀ ତ ସେଠାରେ ହିଁ ସ୍ୱର୍ଗଲୋକ ପ୍ରାପ୍ତି ହୋଇଗଲେ, କିନ୍ତୁ ଶ୍ରୀ ବଳବନ୍ତ ସିଂ ରକ୍ଷା ପାଇଗଲେ । ଗୁଳି ତାଙ୍କୁ ନ ବାଜି ଯାଇ ଆଉ ଏକ ଦେଶଭକ୍ତ ଶ୍ରୀ ବତନ ସିଂଙ୍କୁ ବାଜିଲା । ସେ ମଧ୍ୟ ସେଇଠି ସହିଦ ହୋଇଗଲେ। ଏହି ହତ୍ୟାକାରୀ ଉପସ୍ଥିତ ଲୋକଙ୍କ ପଞ୍ଝାରୁ ବଞ୍ଚିଗଲା । କ୍ୟାନାଡ଼ା ସରକାରଙ୍କ କାନୁନ ମଧ୍ୟ ତାକୁ କିଛି ଦଣ୍ଡ ଦେଇ ପାରିଲାନି । ଆଜି ମଧ୍ୟ ସେ ବଞ୍ଚିଛି । ସେ ପଞ୍ଜାବ ସରକାରଙ୍କ ଗେଲା ପୁଅ ହୋଇ ରହିଛି । ଏହି ସବୁ କାଣ୍ଡ ସେ କାହିଁକି କଲା ଓ ସେଥିରେ ସେ କଅଣ ଭଲ ଦେଖିଲା, ସେ କଥାସବୁ ସେ ହିଁ ଜାଣେ!

ଏହି ଭଳିଆ ସରଗରମ୍ ଅବସ୍ଥାରେ କେତୋଟି ମାସ କଟି ଗଲା । ୧୯୧୪ ମସିହାର ଅନ୍ତିମ ପକ୍ଷ ଆସି ପହଞ୍ଚିଗଲା । ମହାଯୁଦ୍ଧ ଆରମ୍ଭ ହୋଇ ସାରିଥିଲା । ଆମେରିକାରେ ଥିବା ସମସ୍ତ ଭାରତୀୟ ଦେଶକୁ ଫେରି ଆସିବା ପାଇଁ ପ୍ରସ୍ତୁତ ହେବାରେ ଲାଗିଲେ । ଏପରି ପରିସ୍ଥିତିରେ ଆମର ନାୟକ ସେଠାରେ କେମିତି ବା ରହି ପାରିଥାନ୍ତେ । ସପରିବାର ପ୍ରସ୍ଥାନ କଲେ । ସେ ସାଂଘାଇରେ ପହଞ୍ଚିଲେ । ସେଠି ତାଙ୍କ ଘରେ ଏକ ପୁତ୍ର ଜାତ ହେଲା । ସେଠାରେ କାର୍ଯ୍ୟ ଥିବା ଯୋଗୁଁ ତାଙ୍କୁ ନିଜ ଘରକୁ ଫେରିବା ଇଚ୍ଛାକୁ ବଦଳେଇବାକୁ ପଡ଼ିଲା । ପରିବାରକୁ ସେ ଶ୍ରୀ କରତାର ସିଂଙ୍କ ସଙ୍ଗରେ ଭାରତକୁ ପଠେଇ ଦେଲେ ଓ ସେ ସେଠି ରହି ଗଲେ । ସେଠାରେ ଯେଉଁ କାର୍ଯ୍ୟ ଥିଲା ତାକୁ ସାରି ସେ ୧୯୧୫ ରେ ବେଙ୍କକ୍‌ରେ ପହଞ୍ଚିଲେ ।

ସେତେବେଳେ ଦୂର ପ୍ରାଚ୍ୟରେ ବିଦ୍ରୋହ ପାଇଁ ଯେଉଁ ପ୍ରଯତ୍ନ ଚାଲିଥିଲା ତାର ସଂଗଠନ ତଥା ନିୟନ୍ତ୍ରଣ କାର୍ଯ୍ୟ କରିବା ପାଇଁ ତାଙ୍କୁ ସେଠି ରହିବାକୁ ପଡ଼ିଥିଲା। ସେହି ସବୁ ବିଫଳ ଆୟୋଜନର ରୋମାଞ୍ଚକର ଇତିହାସ ଲେଖିବାର ସ୍ଥାନ ଏହା ନୁହେଁ । ସପ୍ତାହେ କାଳ ସିଙ୍ଗାପୁରରେ ରଣଚଣ୍ଡୀର ଯେଉଁ ତାଣ୍ଡବନୃତ୍ୟ ହୋଇଥିଲା, ସେଥିରେ ସାମ୍ରାଜ୍ୟବାଦୀ ଜାପାନ ଓ ଫ୍ରାନ୍ସର ସର୍ବ ଶସ୍ତ୍ର-ସୁସଜ୍ଜିତ ସେନାଙ୍କ ସହାୟତାରେ ଇଂଲଣ୍ଡ ବିଜୟୀ ହୋଇଥିଲା । ଭାରତର ସ୍ୱାଧୀନତା ପାଇଁ ଯେଉଁ ଚେଷ୍ଟା ହେଉଥିଲା ତାହା ନିଷ୍ଫଳ ହୋଇଗଲା । Eastern Plot ଶେଷ ହୋଇଗଲା। ଏପରି ହିଁ ଅବସ୍ଥାରେ ଶ୍ରୀ ବଳବନ୍ତ ସିଂ ଜୀ ବେଙ୍କକ୍‌ରେ ପହଞ୍ଚି ଥିଲେ । ଦୁର୍ଭାଗ୍ୟବଶତଃ ସେ ବେମାରିରେ ପଡ଼ିଗଲେ । ଅବସ୍ଥା ସଙ୍କଟାପନ୍ନ ହୋଇଗଲା, ହସ୍‌ପିଟାଲ ଯିବାକୁ ପଡ଼ିଲା । ନିର୍ବୋଧ ଡାକ୍ତର ଅପରେସନ୍ କରିଦେଲେ ଓ ତାହା ପୁଣି କ୍ଲୋରୋଫାର୍ମ ନ ସୁଙ୍ଘେଇ । ତାଙ୍କରି କଷ୍ଟ ଓ ଦୁର୍ବଳତା ବଢ଼ିଗଲା । ତଥାପି ଚଲାବୁଲା ପାଇଁ ଯୋଗ୍ୟ ନ ହେଉଣୁ ହସ୍‌ପିଟାଲ ଲୋକେ ତାଙ୍କୁ ଚାଲିଯିବା ପାଇଁ କହିଲେ । ଏହି ଅଯୋଗ୍ୟତା ଉପରେ ବି ଧ୍ୟାନ ଦିଆ ଗଲାନି । ହସ୍‌ପିଟାଲରୁ ବାହାର କରି ଦେଲେ । ଏହା ଏତେ ତରବରରେ କାହିଁକି କରାଗଲା ତାହା ବି ଶୁଣି ନିଅନ୍ତୁ । ବାହାରେ ପୁଲିସ ଗିରଫ କରିବା ପାଇଁ ଠିଆ ହୋଇଥିଲେ । ଦ୍ୱାରବନ୍ଧ ଡେଉଁ ଡେଉଁ ତାଙ୍କୁ ଗିରଫ କରି ଦିଆଗଲା । ସେଠି ରହୁଥିବା ଭାରତବାସୀଙ୍କର ଜମାନତ୍-ଅମାନତ୍‌ର ସକଳ ପ୍ରଯତ୍ନ ବିଫଳ ହୋଇଗଲା । ଶ୍ୟାମ ଦେଶର ସ୍ୱାଧୀନ ସରକାର ବିଚାର ପାଇଁ ଶ୍ରୀ ବଳବନ୍ତ ସିଂ ଜୀ ଓ ତାଙ୍କର ଅନ୍ୟ ସାଥୀମାନଙ୍କୁ ଭାରତର ଇଂରେଜ ସରକାରଙ୍କ ଜିମାରେ ଛାଡ଼ି ଦେଲା । ଏପରି କାହିଁକି? ତାହାର ମଧ୍ୟ ଏକମାତ୍ର କାରଣ

ଏହା ଯେ ଭାରତ ଗୋଲାମ ଥିଲା । ଗୋଟିଏ ଗୋଲାମ ଜାତି ପାଇଁ ସର୍ବନାଶୀ ଦୁର୍ଭାଗ୍ୟକୁ କାହିଁକି ବା କିଏ ମୁଣ୍ଡେଇବ। ସତରେ!

ଶ୍ରୀ ବଳବନ୍ତ ସିଂ ଜୀଙ୍କୁ ସିଙ୍ଗାପୁର ଅଣାଗଲା । ସଂସାର ଯାକର ଧମକ ଓ ଲୋଭ ଦେଖେଇ ସବୁ ଭେଦ ଖୋଲି କହିବା ପାଇଁ ରାଜି କରେଇବା ଉଦ୍ଦେଶ୍ୟରେ ସକଳ ପ୍ରକାର ପ୍ରଯତ୍ନ କରାଗଲା, କିନ୍ତୁ ତାଙ୍କରି ପାଖରେ ମୌନ ଛଡ଼ା ଆଉ କଅଣଟା ବା ଥିଲା । ଶେଷରେ ୧୯୧୬ ରେ ତାଙ୍କୁ ଲାହୋର ଷଡ଼ଯନ୍ତ୍ରର ଦ୍ୱିତୀୟ ଅଭିଯୋଗରେ ସାମୀଲ୍ କରାଗଲା । ଅଭିଯୋଗ ସେୟା ଥିଲା, ଯହିଁରେ ନିଷ୍ଫଳ ହେଲେ ମୃତ୍ୟୁଦଣ୍ଡ ମିଳୁଥିଲା । ତାଙ୍କ ଉପରେ ବିଦ୍ରୋହ ଆରୋପ କରାଗଲା । ୨୪ ଦିନ ନାଟକ ଚାଲିଲା । ବେଲା ସିଂ ଜୈଣ୍ଡ୍ ଆଦି କେତେକ ସାକ୍ଷୀ ତାଙ୍କରି ବିରୁଦ୍ଧରେ ହାଜର କରାଗଲେ । ନାଟକଟି ଦୁଃଖାନ୍ତ ଥିଲା । ଅଭିଯୁକ୍ତକୁ ସାମ୍ରାଜ୍ୟର ବଳି ବେଦୀ ଉପରେ ଅର୍ପଣ କରିବା ନିଶ୍ଚୟ କରାଗଲା । ମୃତ୍ୟୁଦଣ୍ଡ ଶୁଣି ଦେବତାଗଣ ଚମକି ଉଠିଲେ । ଏହି ଦେବତାଙ୍କୁ ପୁଣି ମୃତ୍ୟୁଦଣ୍ଡ! ରାକ୍ଷସ-ଦାନବଙ୍କ ମଧ୍ୟରେ ଭୀଷଣ ଅଟ୍ଟହାସ୍ୟର ଲହରୀ ଖେଳି ଯାଇଥିବ ।

କାଳ କଠୋରିରେ ବନ୍ଦ ଥିଲେ । ଶିଖ ହୋଇଥିବା ଯୋଗୁଁ ଟୋପି ପିନ୍ଧି ପାରୁ ନଥିଲେ । କମ୍ବଳ ଦ୍ୱାରା ହିଁ ମୁଣ୍ଡକୁ ଢାଙ୍କି ଦେଉଥିଲେ । ବଦ୍‌ନାମ କରିବା ପାଇଁ କେହି ଜଣେ ଦୁଷ୍ଟାମି କଲା — କମ୍ବଳର କୌଣସି ଏକ କୋଣରେ ଅଫିମ ବାନ୍ଧି ଦେଲା ଓ ରାଷ୍ଟ୍ର କରାଗଲା ଯେ ସେ ଆତ୍ମହତ୍ୟା କରିବା ପାଇଁ ଚାହୁଁଥିଲେ । ସେ ଅତ୍ୟନ୍ତ ଶାନ୍ତ ଭାବରେ ଉତ୍ତର ଦେଲେ — "ମୃତ୍ୟୁ ତ ସାମନାରେ ଠିଆ ହୋଇଛି । ତାରି ଆଲିଙ୍ଗନ ପାଇଁ ତ ମୁଁ ପ୍ରସ୍ତୁତ ହୋଇ ସାରିଛି । ଆତ୍ମହତ୍ୟା କରି ମୁଁ ମୃତ୍ୟୁ-ସୁନ୍ଦରୀକୁ କୁରୂପ କରିବିନି । ବିଦ୍ରୋହ ଅପରାଧରେ ମୃତ୍ୟୁଦଣ୍ଡ ପାଇଥିବାରୁ ମୁଁ ଗର୍ବ ଅନୁଭବ କରୁଛି ।

ଫାଶି କାଠ ଉପରେ ହିଁ ବୀରତାପୂର୍ବକ ପ୍ରାଣ ଦେବି ।" ଅନୁସନ୍ଧାନ କରାଯିବା ପରେ ରହସ୍ୟ ପଦାରେ ପଡ଼ିଲା । କେତେକ ନମ୍ବରଦାର୍ କଇଦି ତଥା ୱାରଡେନ୍‌ଙ୍କୁ କିଛି ଦଣ୍ଡ ମିଳିଲା। ସମସ୍ତେ ତାଙ୍କର ଦେଶଭକ୍ତି ଓ ନିର୍ଭୀକତାର ଯଥା ଯୋଗ୍ୟ ପ୍ରଶଂସା କଲେ ।

୧୯୧୬ ମସିହାର ସମୟ ଥିଲା । ଭାରତରେ କଳାପାଣି ଓ ଫାଶିର ସୁଅ ଛୁଟି ଥିଲା । ସମଗ୍ର ଉତ୍ତର ଭାରତରେ ଏକ ଅସ୍ଥିର ଅବସ୍ଥା ସୃଷ୍ଟି ହୋଇଥିଲା । ଭିତରେ ଭିତରେ ଏକ ବିରାଟ ଗୁପ୍ତ ବିପ୍ଳବର ଆୟୋଜନ ହୋଇ ସାରିଥିଲା । ଭାରତର ଜନତା ଏହା ବିଷୟରେ ଜାଣି ନଥିଲେ । ନେତାମାନେ ସେହି ଲୋକଙ୍କ ଆଡ଼କୁ ଦେଖିବାକୁ ସାହସ କରୁ ନଥିଲେ । ବହୁତ ଲୋକ ବୁଝୁଥିଲେ ଯେ ସରକାର ଏମିତି ହିଁ ଦେଶକୁ ଭୟଭୀତ କରିବା ଉଦ୍ଦେଶ୍ୟରେ ଏହି ଭଳିଆ ଭୀଷଣ ଅଭିଯୋଗମାନ ବାଢ଼ୁଛନ୍ତି । ଯାହା ବି ହେଉ, ସେହି ବିରାଟ ଆୟୋଜନ ନିଷ୍ଫଳ ହୋଇଯିବା ସତ୍ତ୍ୱେ ବି ତାହାର ସୁନ୍ଦର ସ୍ମୃତି ଜିଇଁ ରହିଛି । ସୁନ୍ଦର ଏଇଥି ପାଇଁ ଯେ ତାହା ଆଦର୍ଶବାଦୀ ଯୁବକମାନଙ୍କର ପବିତ୍ର ରକ୍ତରେ ଲେଖା ଯାଇଛି । ଜିଇଁ ରହିଛି ଏଇଥି ପାଇଁ ଯେ ବଳିଦାନ କେବେ ହେଁ ବ୍ୟର୍ଥ ଯାଏନା । ଏହି ବର୍ଷର ଚୈତ୍ର (ମାର୍ଚ୍ଚ) ମାସର ୧୮ ତାରିଖ ଦିନ ଶ୍ରୀ ବଳବନ୍ତ ସିଂ ଜୀଙ୍କ ଧର୍ମପତ୍ନୀ ଦେଖା କରିବାକୁ ଯାଇଥିଲେ । ପୁସ୍ତକ ଓ ବସ୍ତ୍ର ଦେଇ ତାଙ୍କୁ କୁହାଗଲା — "କାଲି ୧୭ ଚୈତ୍ର ଦିନ ତାଙ୍କୁ ଫାଶି ଦିଆଗଲା ।" ସେ କିଂକର୍ତ୍ତବ୍ୟବିମୂଢ଼ ହୋଇ ରହିଗଲେ ।

ଶ୍ରୀ ବଳବନ୍ତଙ୍କ ଫାଶି ଦିନର ଖବର ପରେ ମିଳିଲା । ସେ ପ୍ରାତଃକାଳରେ ସ୍ନାନ କଲେ ଓ ନିଜର ଛ ସାଥୀମାନଙ୍କ ସହିତ (ଯେଉଁମାନଙ୍କୁ ସେହି ଦିନ ହିଁ ଫାଶି ଦିଆ ଯାଇଥିଲା) ଭାରତମାତାଙ୍କୁ ଅନ୍ତିମ ନମସ୍କାର କଲେ । ଭାରତ ସ୍ୱାଧୀନତାର

ଗୀତ ଗାଇଲେ । ହସି ହସି ଫାଶି କାଠରେ ଯାଇ ଠିଆ ହେଲେ । ତା ପରେ କଅଣ ହେଲା? କଅଣ ପଚାରୁଛ ହୋ? ସେଇ ଜଲ୍ଲାଦ, ସେଇ ରସି! ଓ! ସେଇ ଫାଶି ଓ ସେହି ପ୍ରାଣତ୍ୟାଗ!

ଆଜି ବଳବନ୍ତ ଏହି ସଂସାରରେ ନାହାଁନ୍ତି, ତାଙ୍କର ନାମ ଅଛି, ତାଙ୍କର ଦେଶ ଅଛି, ତାଙ୍କର ବିପ୍ଳବ ଅଛି ।

e-mail: neelamanisahu@rediffmail.com

୯୪୩୭୫୧୫୭୮୨